# ଗୁରୁଜୀଙ୍କ ମକର



ଖୁସିରେ ପଢ଼ିବା ଅଭିଯାନ
ଭାରତ ଜ୍ଞାନ ବିଜ୍ଞାନ ସମିତି

## ଗୁରୁଜୀଙ୍କ ମକର

ରଚନା : ବିନୟକୃଷ୍ଣ ପଟ୍ଟନାୟକ
ଅଙ୍କନ : ବ୍ରଜ କିଶୋର ଜେନା
ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ଼୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା : ଓରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।
ମୁଦ୍ରଣ : ପଦ୍ମା କମର୍ସିଆଲ୍ ସେଣ୍ଟର, ଭୁବନେଶ୍ୱର

ସହଯୋଗ ରାଶି : ଅଢେଇ ଟଙ୍କା ମାତ୍ର
ପ୍ରକାଶ କାଳ : ଜାନୁଆରୀ ପହିଲା, ୧୯୯୭

ଏହି ପୁସ୍ତିକାଟି "ଖୁସିରେ ପଢିବା ଅଭିଯାନ" (Jan Va chan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା ପାଇଁ ଏକ ପାଠାଗାର ଆନ୍ଦୋଳନ ଚାଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

● The Book Friends of Gurujee ● Text - Binaya Krushna Pattanayak. ● Illustration - Braja Kishore Jena ● Published by B.G.V.S., Orissa for Jan Vachan Andolan ●Price - Rs. 2.50 ● Publication Period - 1.1.97.

ଗୋଟିଏ ଗାଁରେ ଜଣେ ବୁଢ଼ା ଥିଲେ । ସେ ଭାରି କାମିକା ଥିଲେ । ନୂଆ ନୂଆ କାମ କରିବାକୁ ତାଙ୍କୁ ଖୁବ ଭଲ ଲାଗୁଥିଲା । ଯାହାବି ନୂଆ ଦେଖିଲେ ସେଥିରେ ଲାଗି ଯାଉଥିଲେ । ତାଙ୍କୁ ଅନେକ ରକମର କାମ ଜଣାଥିଲା । ସେ କୁଆଡ଼େ ଗାନ୍ଧିଜୀଙ୍କ ସହିତ ମିଶି ସ୍ୱାଧୀନତା ସଂଗ୍ରାମ ବି ଲଢ଼ିଥିଲେ । ସେ ଚମ୍ପତିମୁଣ୍ଡା ଠାରେ ''ଜୀବନ ବିଦ୍ୟାଳୟ''ରେ ପଢ଼ାଉଥିଲେ । ପିଲାଙ୍କୁ ବହିପଢ଼ା ଛଡ଼ା କାଠ କାମ, ଚାଷ, ବଗିଚା କାମ, ଗାଈ, ମହୁମାଛି ପାଳନ ବି ଶିଖାଉଥିଲେ । ତାଙ୍କ ହାତରେ ସବୁ କାମ ହେଉଥିଲା ।

ବୁଢ଼ାଙ୍କର ଗୋଟିଏ ଘର ଥିଲା । ଏଥିରେ ତିନୋଟି ବଖରା ଥିଲା, ବୁଢ଼ା ଏକା ରହୁଥିଲେ । ସେ ଅବିବାହିତ ଥିଲେ । ନିଜର ସବୁ କାମଦାମ ସେ ନିଜେ କରୁଥିଲେ । ତାଙ୍କର ସାଙ୍ଗ ଥିଲେ ବହି ବହି ଆଉ ବହି । ତାଙ୍କର ଗୋଟିଏ ବଖରାରେ ସେହି ବହିମାନେ ରହୁଥିଲେ । ଏମାନଙ୍କୁ ବୁଢ଼ା ବହୁତ ଭଲ ପାଉଥିଲେ । ବହିଗୁଡ଼ିକ ଗୋଟିଏ ବିଷୟରେ ନ ଥିଲେ । ଏମାନେ ଥିଲେ ନାନା କିସମର ବହି । ଚାଷବାସ, ପଶୁପକ୍ଷୀ, ଗଛଲତା, ଆକାଶ । ମାଟି, ପାଣି, ପବନ । ସମାଜ, ସାହିତ୍ୟ, ସଂସ୍କୃତି । ଦେଶ, ବିଦେଶ, ପୃଥିବୀ, ବିଶ୍ୱ । ପୁରାଣ, ଭାଗବତ, ରାମାୟଣ......ଏମିତି କେତେ ରକମର ବହି ।

ଗୋଟିଏ ବଖରାରେ ବୁଢ଼ା ନିଜେ ରହୁଥିଲେ । ଗୋଟିଏ ବଖରାରେ ତାଙ୍କ ମକର ବହିମାନେ । ଆର ବଖରାରେ ତାଙ୍କର ସାମାନ ସବୁ ଥିଲା । ପ୍ରତ୍ୟେକ ବହିକୁ ସେ ଆଦର କରୁଥିଲେ । ସମସ୍ତଙ୍କୁ ଯତନରେ ରଖୁଥିଲେ । ସେ ପାଞ୍ଚଟି ଥାକ କରିଥିଲେ । ଏଥିରେ ବହିମାନଙ୍କୁ ସଜାଇ ରଖିଥିଲେ । ପ୍ରତି ବହିରେ ସେ ସୁନ୍ଦର ମଲାଟ ମଡ଼ାଉଥିଲେ । ଲାଗୁଥିଲା ଯେପରି ବହିମାନଙ୍କୁ ସେ ରଙ୍ଗୀନ ଜାମା ପିନ୍ଧାଇ ଦେଇଛନ୍ତି ।

ବହିମାନେ ବି ବୁଢ଼ାଙ୍କୁ ସେତିକି ଭଲ ପାଉଥିଲେ । ବୁଢ଼ା କାମ ସାରି ଫେରିବା ଆଭାସ ପାଇଲେ ସେମାନେ ଉଲୁସି ଉଠୁଥିଲେ । ବୁଢ଼ା ପ୍ରତିଦିନ



ତାଙ୍କ ବହିଘରେ ବସି ପଢ଼ୁଥିଲେ । ପ୍ରତିଦିନ ସେ ସେମାନଙ୍କୁ ଝାଡୁଥିଲେ ଓ ପୋଛୁଥିଲେ । କେଉଁଠି ଚିରିଗଲେ ଅଠା ଦେଇ ସେ ମରାମତି କରିଦେଉଥିଲେ । ବୁଢ଼ା ବହିଟିଏ ଧରିଲା କ୍ଷଣି ସେ ଖିଲିଖିଲି ହୋଇ ହସୁଥିଲା । ‘‘ମତେ ପଢ଼, ମତେ ପଢ଼’’ କହି ବୁଢ଼ାଙ୍କୁ ଅଳି କରୁଥିଲା । ବୁଢ଼ା ମୁରୁକି ମରୁକି ବହିଟିକୁ ଖୋଲୁଥିଲେ ।

ସେ ଲେଖା ଉପରେ ଆଖି ପକାଇଲା କ୍ଷଣି ବହିର ଅକ୍ଷରମାନେ ବୁଢ଼ାଙ୍କ ଆଖି ଭିତରକୁ ଡ଼େଇଁ ଯାଉଥିଲେ । ଆଖିରୁ କ୍ରମେ ସେମାନେ ବୁଢ଼ାଙ୍କ ମସ୍ତିଷ୍କକୁ ଚାଲିଯାଉଥିଲେ । ସେମାନେ ବୁଢ଼ାଙ୍କୁ କେତେ ନୂଆ ନୂଆ ଭାବନା ଆଣିଦେଉଥିଲେ । ବୁଢ଼ା ଭାବନା ରାଇଜରେ ମଜି ଯାଆନ୍ତି । ଇତି ମଧ୍ୟରେ ଅକ୍ଷର ଦଳଟି ବହିକୁ ଫେରିଆସନ୍ତି । ତା’ ପର ଧାଡ଼ିର ଅକ୍ଷର ଦଳଟି ବୁଢ଼ାଙ୍କ ଆଖି ଓ ମୁଣ୍ଡକୁ ଯାଆନ୍ତି । ସେମାନେ ବୁଢ଼ାଙ୍କୁ ଉପଦେଶ ଦେଇ ଫେରନ୍ତି । ଏଥର

ଯାଏ ତା'ପର ଅକ୍ଷର ଧାଡ଼ି । ଏପରି ଧାଡ଼ି ପରେ ଧାଡ଼ି ଡ଼େଇଁ ଡ଼େଇଁ ବୁଢ଼ା କେଉଁ ନୂଆ ରାଇଜରେ ହଜି ଯାଆନ୍ତି ।

ଥାକରୁ ଅନ୍ୟ ବହିମାନେ ବୁଢ଼ାଙ୍କ ସହ ଅକ୍ଷରମାନଙ୍କ ଖେଳକୁ ଏକଲୟରେ ଅନାଇଥାଆନ୍ତି । ଅକ୍ଷରମାନଙ୍କ ଏହି ଖେଳ ସାଙ୍ଗକୁ ବୁଢ଼ାଙ୍କ ହାବଭାବ ଦେଖିବାକୁ ଭାରି ମଜା ଲାଗେ । ବୁଢ଼ାଙ୍କର ପ୍ରତିକ୍ରିୟା ବଦଳି ଚାଲିଥାଏ । କେତେବେଳେ ସେ ମୁରୁକି ମୁରୁକି ହସନ୍ତି ତ କେତେବେଳେ ଠୋ ଠୋ ହୋଇ ହସି ପକାନ୍ତି । ତାଙ୍କ ଆଖିରୁ ମୋଟା ଚଷମାଟା ଗଳିପଡ଼େ ।

କେତେବେଳେ ପୁଣି କେଉଁ କରୁଣ କାହାଣୀ ପଢ଼ି ଆଖିରୁ ପାଣି ଝରିଆସେ, ମନରୁ ବି ଗଙ୍ଗା ଯମୁନା ବହିଯାଏ । ଧୋତିରେ ଲୁହ,ସିଂଘାଣି ପୋଛି ସେ ପୁଣି ବହିରେ ମଜିଯାଆନ୍ତି । କେବେ ପୁଣି କାବା ହୋଇ ତାଙ୍କ ଆଖିଡ଼ୋଳା ଜଗନ୍ନାଥଙ୍କ ଆଖିପରି ଡ଼ିମା ଡ଼ିମା ହୋଇଯାଏ । କେବେ ଚିନ୍ତାରେ ତାଙ୍କ କପାଳରେ ଛ' ସାତଟା ଗହୀର ଗାର ଟାଣି ହୋଇଯାଏ ।

ଏହି ନୀରବ ନାଟକ ଦେଖିବାକୁ ବହିମାନେ ଅନେଇ ବସିଥାନ୍ତି । କାନ୍ଥ ଘଡ଼ିଟି ଟିକ୍ ଟିକ୍ ଶବ୍ଦ କରି ଚାଲୁଥାଏ । ବୁଢ଼ା କାଗଜ ପରେ କାଗଜ ଗଡ଼େଇ ଚାଲନ୍ତି । ଶେଷରେ ବହିଟିର କାଗଜ ସରିଯାଏ । ବୁଢ଼ା ଏତେ ମଜିଯାଆନ୍ତି ଯେ, ଖିଆପିଆ ବି ଭୁଲିଯାଆନ୍ତି । ବହି ପ୍ରତି ତାଙ୍କର କେମିତି କେଜାଣି ବହୁତ ଦୁର୍ବଳତା ଥିଲା । ବହିଖଣ୍ଡେ ନ ପଢ଼ିଲେ ତାଙ୍କୁ ନିଦ ଆସୁ ନଥିଲା ।

ଗାଁରେ ତାଙ୍କ ପରି ଏତେ କିଏ ପଢ଼ି ନଥିଲେ । ଯେ କୌଣସି ବିଷୟରେ କହିଲେ ବୁଢ଼ା କିଛି ନା କିଛି ଜାଣିଥିଲେ । ଅନ୍ୟମାନଙ୍କ ଘରେ ଚକମକିଆ ଜାମା,ଜୋତା, ପଲଙ୍କ ଆଦି ଥିଲା । କିନ୍ତୁ ବୁଢ଼ାଙ୍କର ବହି କିଣାରେ ହିଁ ବେଶୀ ଖର୍ଚ୍ଚ ହେଉଥିଲା । ଚାଲିଚଳଣ, ବେଶଭୂଷାରେ ସେ ଅତି ସରଳ ଥିଲେ ।

ସବୁ ବେଳେ ମିଠା କଥା କହୁଥିଲେ । କିନ୍ତୁ କଠିନ ପରିଶ୍ରମ କରିବା ସାଙ୍ଗକୁ ନିୟମିତ ପଢୁଥିଲେ । ସେ ଥିଲେ ଗାନ୍ଧିଜୀଙ୍କର ଜଣେ ଅସଲ ଚେଲା ।

ତାଙ୍କର ବୁଝାମଣା ପାଇଁ ଗାଁରେ ସଭିଏଁ ତାଙ୍କୁ ଖାତିର କରୁଥିଲେ । ସ୍ନେହରେ ତାଙ୍କୁ ଗୁରୁଜୀ ବୋଲି ଡ଼ାକୁଥିଲେ । ତାଙ୍କ ବହିମାନେ କିନ୍ତୁ ତାଙ୍କୁ ମକର ବୋଲି ଡ଼ାକୁଥିଲେ ।



ବେଳେ ବେଳେ ଗାଁର କିଛି ପିଲା ଗୁରୁଜୀଙ୍କ ସଂସାରକୁ ଆସୁଥିଲେ । ଗୁରୁଜୀଙ୍କୁ ଏହା ଖୁବ୍ ଭଲ ଲାଗୁଥିଲା । ସେ ପିଲାମାନଙ୍କୁ ପାଛୋଟି ନେଉଥିଲେ । ତାଙ୍କ ବହି ସାଙ୍ଗମାନଙ୍କ ସହ ଜଣଜଣ କରି ପରିଚିତ କରାଇ ଦେଉଥିଲେ । ପିଲାମାନଙ୍କର ଉଜ୍ଜ୍ୱଳ ଆଖି, ଚଞ୍ଚଳତା ଓ ଖୁସି ମିଜାଜ ଦେଖି ବହିମାନେ ବି ଉଲୁସି ଉଠୁଥିଲେ ।

ପିଲାମାନଙ୍କୁ ଗୋଟିଏ କଥା କାବା ଲାଗୁଥିଲା - ଗୁରୁଜୀ କେତେ ନୂଆ କଥା ଜାଣିଛନ୍ତି ! ଗୁରୁଜୀ ହସି ହସି କହନ୍ତି- ଆରେ....ଏହା କିଛି ଯାଦୁ ନୁହେଁ । ମୋର ଏହି ମକର ମାନେ ହିଁ ମୋତେ ଏସବୁ କଥା ଶିଖାଇଛନ୍ତି । ଆମେମାନେ ବହୁତ ଭଲ ସାଙ୍ଗ; ମୁଁ ତାଙ୍କୁ ଝାଡ଼ି ଝୁଡ଼ି ଯତନ କରେ । ସେମାନେ ମତେ ଆନନ୍ଦ, ବୁଦ୍ଧି ଓ ଶାନ୍ତି ଦିଅନ୍ତି । ଏମାନେ ହିଁ ମୋର ସବୁଠୁ ଭଲ ସାଙ୍ଗ ।

ଥରେ ଗୁରୁଜୀ ପିଲାଙ୍କୁ ଗୋଟିଏ କାହାଣୀ ଶୁଣାଇଲେ । ଥରେ ସେ ବଜାରକୁ ଯାଇଥିଲେ । ତାଙ୍କର ଖଣ୍ଡିଏ କମିଜ ଲୋଡ଼ା ଥିଲା । ସେ ଦୋକାନରେ ପହଞ୍ଚିଲେ । ଦୋକାନୀ ଜଣକ ତାଙ୍କର ଚିହ୍ନା ଥିଲା । ସେ ଗୁରୁଜୀଙ୍କୁ ଦେଖି ଖୁସି ହୋଇଗଲା । ସେ ଚାହୁଁଥିଲା ଗୁରୁଜୀ ଖଣ୍ଡିଏ ଭଲ କନାର କାମିଜ ପିନ୍ଧନ୍ତୁ । ତେଣୁ ସେ ବାଛି ବାଛି ସବୁଠୁ ଚିକ୍କଣ ଓ ସୁନ୍ଦର କନାଟି ଗୁରୁଜୀଙ୍କୁ ଦେଖାଇଲା । ସେ କହିଲା, ଏହାର ଲେଖା ଦାମ୍‌ଠୁ ସେ କମ୍ ପଇସା ନେବ । କିଣା ଦାମ୍‌ରେ ଦେବ । ଗୁରୁଜୀ ହସିଲେ; କହିଲେ, ''ମୋର ଏତେ ଦାମୀ କନା କ'ଣ ହେବ ? ''

ସେ ବାଛି ବାଛି ମୋଟା ଖଦଡ଼ କନା ଖଣ୍ଡେ ହିଁ କିଣିଲେ । ଏହା ସବୁଠୁ ଶସ୍ତା ଥିଲା । ଘରକୁ ଫେରିଲାବେଳେ ବଳକା ପଇସାରେ ସେ ଖଣ୍ଡିଏ ବିଜ୍ଞାନ ବହି କିଣି ଫେରିଲେ । ଗପଟି ସାରି ଗୁରୁଜୀ କହିଲେ, ''ଏହି ବହିଟିକୁ ଦେଖ, କେତେ ବଢ଼ିଆ ହୋଇଛି । ଏଥିରେ ଆକାଶର ତାରା, ଗ୍ରହ, ଉପଗ୍ରହଙ୍କର କେତେ ସୁନ୍ଦର ଛବି ଓ ଲେଖା ରହିଛି । ଏହାକୁ ଦେଖିଲେ ମତେ ଲାଗେ ସତେ ଯେମିତି ମୁଁ ମହାକାଶରେ ଉଡ଼ିବୁଲୁଛି । ସେହି ଦାମ୍ କନାଟିକୁ କିଣିଥିଲେ, ମୁଁ କ'ଣ ଏହି ମଜା ପାଇ ପାରିଥାନ୍ତି ? ''

ଗୁରୁଜୀ ଏପରି କେତେ ମନଛୁଆଁ କଥା କହନ୍ତି । ଏହାକୁ ଶୁଣିବା ପରେ ପିଲାଙ୍କ ମନ ସେହି ବହିରେ ଚୁମ୍ବକ ପରି ଲାଖିଯାଏ । ସେମାନେ ବହିପଢ଼ାରେ ଲାଗିଯାଆନ୍ତି । ଗୁରୁଜୀ ବି ତାଙ୍କ ସାଙ୍ଗରେ ବହି ପଢ଼ନ୍ତି । ଶେଷରେ ସମସ୍ତେ ମିଶି ବହି ବିଷୟରେ ଆଲୋଚନା କରନ୍ତି । ସଭିଏଁ ନିଜ ନିଜ ବହି ବିଷୟରେ କିଛି କିଛି କହନ୍ତି । ଏହା ପିଲାଙ୍କୁ ଭାରି ଭଲ ଲାଗେ । ବହିର ଦୁନିଆଁ ଯେ



କେତେ ବଡ଼ ସେମାନେ ଏଥିରୁ ଠଉରାଇନିଅନ୍ତି । ଗୁରୁଜୀଙ୍କର ଗୋଟିଏ ଗୀତ ପିଲାଙ୍କୁ ବେଶ୍ ନିଜର ଲାଗେ । ସେମାନେ ବି ବହିମାନଙ୍କର ସାଙ୍ଗ ହୋଇ ଚାଲିଥାନ୍ତି । ତାଙ୍କର ନିଜ ଅନୁଭୂତିଗୁଡ଼ିକ ହିଁ ଗୀତରେ ସେମାନେ ଗାଆନ୍ତି । ଏହା ଗୁରୁଜୀଙ୍କର ବି ଅତି ପ୍ରିୟ ଥିଲା । ସମସ୍ତେ ଗାଉଥିଲେ :

ଶୁଣ କୁନା, ମୁନା, ଝୁନା ... ବହି କିଛି କହୁଛି
ଶୁଣି କି ପାରୁଛ ତୁମେ ସେ ଯେ କହି ଚାଲିଛି
ଆସ ବହି ଖୋଲିବା
ତା'ର ଡ଼ାକ ଶୁଣିବା
ଆରେ ଆରେ ଆରେ ଆରେ ବାଃ ....
ହସ, ଖେଳ, ଗୀତ, ଗପ କେତେ ଭରିଛି ।

ବହି ଦେହେ ପକ୍ଷୀ ଗାଏ ନାଚି ନାଚିକା
ତା ଦେହରେ ଢେଉ ଖେଳେ ଲୋଟି ଲୋଟିକା
ତା ଝରଣା ନାଚି ଯାଏ ବହି ବହିକା
ଶୁଣାଏ କେତେ ପରୀ ରାଇଜ କଥା ।
ଶୁଣି କି ପାରୁଛ ତୁମେ ସେ ଯେ କହି ଚାଲିଛି
ଆମରି ସାଥିରେ ସେ ଯେ ସାଙ୍ଗ ହେବ କହୁଛି
ଶୁଣ କୁନା, ମୁନା, ଝୁନା ... ବହି କିଛି କହୁଛି ।

ବେଳେବେଳେ ସେମାନେ ବହିର ଦୁନିଆ ବାହାରକୁ ବି ଚାଲିଯାଉଥିଲେ । କେବେ ସେମାନେ ବହି ଅନୁସାରେ ବଗିଚାରେ ଗଛ ଲଗାଉଥିଲେ । ନାନା ଗଛର ଫଳ, ଫୁଲ, ପତ୍ରକୁ ନିରେଖି ଦେଖୁଥିଲେ । ହାତ ପାହାନ୍ତା ଜିନିଷରେ ଖେଳଣାମାନ ବନାଇ ରଖୁଥିଲେ ।

ଆକାଶରେ ତାରା ଚିହ୍ନୁଥିଲେ । ଗୀତ ଗାଉଥିଲେ । ଗପ କହୁଥିଲେ । ଏମିତି ବିବିଧ ଦଳଗତ କାମ କରୁଥିଲେ । ଏଥିସହିତ ବହିମାନେ ବି ତାଙ୍କର ସାଙ୍ଗ ହୋଇ ଯାଉଥିଲେ। ଏ ହାତରୁ ସେ ହାତ, ଗୋଟିଏ ପୃଷ୍ଠା ପରେ ଆଉ ଏକ ପୃଷ୍ଠା । ତାଙ୍କ ଉପରେ ଆଲୋଚନା .... ଏ ସବୁରୁ ସେମାନେ ବି ମନଭରି ଆନନ୍ଦ ପାଉଥିଲେ ।

ଥରେ ମୁଁ ଗୁରୁଜୀଙ୍କ ବହି କୋଠରୀକୁ ଯାଇଥିଲି । ସେତେବେଳେ ଗୁରୁଜୀ ପିଲାଙ୍କ ସହ ବହି କୋଠିରେ ବସିଥିଲେ । ସଭିଏଁ ମିଶି ବହିଙ୍କ ସାଥିରେ ଖେଳୁଥିଲେ । ମୁଁ ଆଗରୁ ସ୍କୁଲ କଲେଜରେ ପଢ଼ିଥିଲି । ଏବେ ମୁଁ ଗୋଟିଏ କଲେଜରେ ପଢ଼ାଉଛି । ପିଲାଦିନରୁ ଏବେଯାଏଁ ମୁଁ କେତେ ବହି ଦେଖିଚାଲିଛି । କିନ୍ତୁ କେଉଁଠି ବହିମାନେ ଏମିତି ହସିବା ଓ ଖେଳିବା କେବେ ବି ଦେଖି ନଥିଲି । ମୁଁ ଏହାର କାରଣ ଖୋଜିବାକୁ ଚେଷ୍ଟା କଲି ।

ଖାଲି ଗୁରୁଜୀ ନୁହନ୍ତି; ପିଲାଙ୍କ ସହିତ ବି ବହିମାନେ ବେଶ୍ ଖୋଲି ଯାଉଥିଲେ । ଯିଏ ଯେତେ ସ୍ନେହ ଦେଖାଉଥିଲା, ବହିମାନେ ତା' ଆଗରେ

ସେତେ ଭରସି ଯାଉଥିଲେ । ଏତିକିବେଳେ ଗୋଟିଏ ଅଘଟଣ ଘଟିଗଲା । ଜଣେ ପିଲା ଅଳ୍ପ ଦୁଷ୍ଟ ଥିଲା । ସେ ବହିଗୁଡ଼ିକୁ ବିଶେଷ ଯତ୍ନ କରୁ ନଥିଲା । ସେ ଏତେ ମନ ଦେଇ ପଢୁ ନ ଥାଏ କି ମଜା ବି ପାଇ ପାରୁ ନଥାଏ । ସେ ବେଖାତିର ହୋଇ ବହିଟିକୁ ଓଲଟାଉଥାଏ । ବହିଟିର ପୃଷ୍ଠାଟିଏ ଅଳପ ଚିରିଗଲା । ହସର ଜୁଆରରେ ହଠାତ୍ ଭଙ୍ଗା ପଡ଼ିଗଲା । ବହିଟି ଆଉ ହସିବ କ'ଣ ? ମୁହଁଟାକୁ ହାଣ୍ଡି ଭଳି କରି ସେ କାନ୍ଦିବାରେ ଲାଗିଲା ।

ସବୁ ପିଲା ପୂରା ଚୁପ୍ ହୋଇଗଲେ । ଜଣେ ପିଲା ସାଙ୍ଗେ ସାଙ୍ଗେ ଅଠା ବୋତଲଟାଏ ନେଇ ଆସିଲା । ଆଉ ଜଣେ ଚିରା ମାପ ଅନୁସାରେ ସଫା କାଗଜଟିଏ କାଟିଲା । ଦୁହେଁ ମିଶି ଚିରା ଭାଗଟିକୁ ଯୋଡ଼ିଦେଲେ । କିନ୍ତୁ ଚିରିଥିବା ପିଲାଟିକୁ କେହି ପଦେ ବି କିଛି କହିଲେ ନାହିଁ । ସେ ନିଜେ ବୁଝିପାରିଥିଲା, ବେଖାତିର ହେଲେ କ'ଣ ହୁଏ । ଅଳପ ସମୟ ଭିତରେ ପୁଣି ହସର ମହଲଟି ସତେଜ ହୋଇଉଠିଲା ।

ମୁଁ ଜଣେ ଶିକ୍ଷକ ହୋଇ ବି ଏହା ମୋ ପାଇଁ ଏକ ମହାନ ଶିକ୍ଷା ଥିଲା । ସେଦିନ ମୁଁ ବୁଝିଗଲି ଯେ, ବହି କେବଳ କେତେକ ଶୁଖିଲା କାଗଜ ଓ କାଳି ଛାପ ନୁହେଁ । ବରଂ ଏକ ଜୀବନ୍ତ ଦୁନିଆ । ସେ ବି ଆମମାନଙ୍କ ପରି କଥା କହେ, ହସେ ଓ ମତାଇପାରେ । ବରଂ ଆମମାନଙ୍କ ପରି ଏମାନଙ୍କ ଭୂମିକା ବି ଅତି ଗୁରୁତ୍ୱପୂର୍ଣ୍ଣ ।

ଆମେ ଅତି ବେଶୀରେ ୮୦-୧୦୦ ବର୍ଷ ବଞ୍ଚିବା । କିନ୍ତୁ ବହି ଯୁଗଯୁଗ ଧରି ମଣିଷ ସମାଜକୁ ଚେତାଇ ରଖିପାରିବ । ମଣିଷର ଆଦିମ ଗୁଣକୁ ସଜାଡ଼ି ତାକୁ ମାନବିକ ଆଖି ଦେଖାଇ ପାରିବ । ସାରା ମଣିଷର କାଲି, ଆଜି, ହସ, ଖୁସି, ଦୁଃଖ, କଳ୍ପନା, ସ୍ୱପ୍ନ, ଯୋଜନା, ବାଟ ଆଦି ସବୁ ଏଥିରେ ସାଇତା ହୋଇରହିଛି ।

ମଣିଷ ଜଣେ ସାଥି ମଣିଷଠୁ ଯେତିକି ଶିଖିପାରିବ, ବହିଠାରୁ ତା'ଠୁ ବେଶୀ । ତେଣୁ ସାଥି ମଣିଷ ପରି ତାକୁ ବହି ସାଙ୍ଗରେ ବି ମଜର ବସିବାକୁ

ହେବ । ଯିଏ ଯେତିକି ବହିଙ୍କର ସାଙ୍ଗ ହୋଇପାରିବ, ତାର ଜୀବନଧାରା ସେତିକି ମାଜି ହୋଇପାରିବ । ଯେ କୌଣସି ସଭ୍ୟ ପରିବେଶର ମୂଳ ଆଧାର ଏହି ବହିର ଜ୍ଞାନ ବିଜ୍ଞାନ । ସେଦିନ ମୁଁ ବି ପିଲାଙ୍କ ସହ ମିଶି ମନ ଖୁସିରେ ଗାଇଥିଲି :

ରକେଟ ଜାହାଜ ଆଉ ଅଜଣା ନୁହେଁ ,
ବିଜ୍ଞାନର କାଲି ଆଜି ସବୁ ସେ କହେ ।
ବହିର ଦୁନିଆ ସତେ କେତେ ଯେ ବଡ଼,
ଦୁନିଆ ଯାକର କଥା ତା' ଦେହେ ଲେଖା ।

ଶୁଣିକି ପାରୁଛ ତମେ ସେ ଯେ କହିଚାଲିଛି ...
ଆମରି ପାଖରେ ସିଏ ରହିବାକୁ ଚାହୁଁଛି ...
ଆମରି ସାଥିରେ ସିଏ ସାଙ୍ଗ ହବ କହୁଛି ...
ଶୁଣ ଭାଇ ଭଉଣୀହେ ବହି କିଛି କହୁଛି

ମୋ ପାଇଁ ଏହା ଏକ ଆନନ୍ଦମୟ ଦିନ ଥିଲା । ମୋ ଜୀବନର ଏକ ଆବିଷ୍କାର ଏକ ନୂଆ ଦିଗ । ମୁଁ ବି ଜଣେ ବହିପ୍ରେମୀ ମଣିଷ ବନିଯାଇଥିଲି । କାହିଁକି କେଜାଣି ସେବେଠାରୁ ବହିଟିଏ ଦେଖିଲେ ଗୁରୁଜୀଙ୍କ ବହିପ୍ରେମୀ ଆଖି ଦୁଇଟି ମୋତେ ଉଜ୍ଜ୍ୱଳ ଦେଖାଗଲା । ମୁଁ ବି ସବୁଆଡ଼େ ବହିର ଗୁଣ ଗାଇ ଚାଲିଲି । ଗୁରୁଜୀଙ୍କ ଗୀତଟି ମୋ ମନ ଭିତରେ ଟିପି ହୋଇଯାଇଥିଲା ।

ମୋ ଶ୍ରେଣୀର ପିଲାମାନେ ବି ଆଗ ଅପେକ୍ଷା ମୋ ଆଗରେ ଅଧିକା ଖୋଲିଗଲେ । ଆମେ ସାଙ୍ଗ ପରି ଗପିପାରିଲୁ । ନିଜ ନିଜ ଅନୁଭୂତି ବାଣ୍ଟିପାରିଲୁ । ହସ ଓ ଖୁସିର ମହଲ ଭିତରେ ଜୀବନଟା ଅଧିକା ସତେଜ, ସରସ ଓ ମଧୁର ମନେ ହେଲା । ଆଗରୁ ଜୀବନଟା ଭାରି ଶୁଖିଲା ଓ ନିଃସଙ୍ଗ ଲାଗୁଥିଲା । ଏବେ ଏହା ପୂରାପୂରି ଓଲଟିଗଲା । ଜୀବନ ଓ ସୃଷ୍ଟି ପ୍ରତି ମୋର ମୋହ ବଢ଼ିଗଲା । ପୁଣି ଗୁରୁଜୀଙ୍କୁ ଭେଟିବା ପାଇଁ ମନ ହେଲା ।

ଖରାଛୁଟି ଆସିଲା । ମୋ ସାଙ୍ଗରେ ମୋର ସାତ ଜଣ ଛାତ୍ରଛାତ୍ରୀ ବି ବାହାରିଲେ । ମୋ ଠାରୁ ଶୁଣି ଶୁଣି ତାଙ୍କ କଳ୍ପନାରେ ଗୁରୁଜୀ ବିଶାଳକାୟ ହୋଇଯାଇଥିଲେ । ସେମାନଙ୍କ ମନରେ ସ୍ୱପ୍ନର ଗୁରୁଜୀ ଓ ମୋ ମନରେ ସ୍ମୃତିର ଗୁରୁଜୀ ଆମକୁ ଚୁମ୍ବକ ପରି ଟାଣି ଚାଲିଥିଲେ । ଆମେ କେହି କାହାକୁ ଏ ବିଷୟରେ କିଛି କହୁ ନ ଥାଉ । କିନ୍ତୁ ଜୀବନକୁ ପ୍ରେମ ମାଧ୍ୟମରେ ଆନନ୍ଦମୟ କରି ଦେଉଥିବାର ଏହି ମଣିଷଟି ବିଷୟରେ ହିଁ ଭାବି ଚାଲିଥାଉ ।



ଗାଁଟିରେ ପହଞ୍ଚିଲୁ । ଗାଁଟିର ରୂପରେଖା ବର୍ଷକ ଭିତରେ ସେମିତି କିଛି ବଦଳି ନଥାଏ । ଗୁରୁଜୀଙ୍କ ଘରକୁ ବାଟଟି ଖୋଜିବାରେ ବିଶେଷ ଅସୁବିଧା ହେଲା ନାହିଁ । ଆଠ ଜଣିଆ ଦଳଟି ତାଙ୍କ କୋଠିରେ ପହଞ୍ଚିଲୁ । ଦିନ ଦି'ପହର । କିନ୍ତୁ ଏ କ'ଣ ! ଘର ସାମନାରେ ବଡ଼ ତାଲାଟିଏ ଝୁଲୁଛି । ପଛରୁ କିଏ ଜଣେ ଆସୁଥିବାର ଶୁଭିଲା । ଦେଖିଲି ଜଣେ ବୟସ୍କା ବୁଢ଼ୀ ଆମ ଆଡ଼କୁ ଆସୁଛନ୍ତି । କାନ୍ଦକୁ ଚାପିଚାପି ସେ କହିଲେ, ''ଆଉ କାହିଁକି ଆସିଲୁ ପୁଅ ? ଗୁରୁଜୀ ଆଉ ନାହାନ୍ତି ।'' ବୁଢ଼ୀ ଆଉ କିଛି କହିପାରିଲେ ନାହିଁ । କାନ୍ଦିବାକୁ ବି ତାଙ୍କ

ଦେହରେ ବଳ ନ ଥିଲା । ଲୁହତକ ହିଁ ଦେଖାଗଲା ।  କାନ୍ଦର ମୁହଁକୁ ଲୁଚାଇ ସେ ପାଖ ଚାଳଘରଟି ଭିତରେ  ପଶିଗଲେ ।

ପାଖରେ ଅନେକ ଆଶା ନେଇ ମୋର ସାତଟି ଛୁଆ । ମୁଁ ଯଦି କାନ୍ଦେ ସେମାନଙ୍କ ଅବସ୍ଥା କ'ଣ ହେବ !  କେହି କାହାରିକୁ କିଛି କହିପାରିଲୁ ନାହିଁ । ଅନେକ ଚେଷ୍ଟା କରି ମୁଁ କୋହକୁ ଚାପିଦେଲି । କିନ୍ତୁ ଲୁହକୁ ଅଟକାଇ ପାରିଲି ନାହିଁ କି  ଓଠଟାକୁ  ଜୋରରେ ନ ଚାପି ରହିପାରିଲି ନାହିଁ । ଏତିକି ବି ପିଲାଙ୍କ ପାଇଁ ଯଥେଷ୍ଟ ଥିଲା । ଶୂନ୍ୟତା ଓ ଅସହାୟତାର କୋହରେ ସେମାନଙ୍କ ଆଖି ଛଳ ଛଳ ହୋଇଗଲା । ଏହା ଯେତେ ଅସୁନ୍ଦର ଦେଖାଗଲେ ବି ମୋ ପାଇଁ ଆଉ ଚାରା ନ ଥିଲା । କିଛି ସମୟର ନୀରବ ଆନ୍ତରିକ ଆନ୍ଦୋଳନ ମାଧ୍ୟମରେ ଆମେ ଆଗ ପାଇଁ  ତିଆର ହେବାକୁ ଚେଷ୍ଟା କଲୁ  ।

ଛୋଟିଆ ଗାଁଟିରେ ଦଳେ ଆଗନ୍ତୁକଙ୍କ ଉପସ୍ଥିତି ଖବର ଖୁବ ଶୀଘ୍ର ଚରିଗଲା । ଅଳପ ସମୟ ଭିତରେ ଗୁରୁଜୀଙ୍କ ଚେଲା ଦଳଟି ଆମ ପାଖରେ ପହଞ୍ଚିଗଲେ । ତାଙ୍କ ମୁହଁରେ ଆଗର ଖୁସି କି ସତେଜତା  ନଥିଲା । ଲାଗୁଥିଲା, ସତେ ଯେପରି ସେମାନେ ସ୍କୁଲରେ ଦିଦିଙ୍କର ବେତମାଡ଼ ଖାଇସାରି ଘରେ ନିଜ ମା'ଙ୍କ ପାଖରେ ପହଞ୍ଚିଛନ୍ତି ।  ମୁଁ ଠଉରାଇନେଲି ,"ଏହା ନିଶ୍ଚୟ ଗୁରୁଜୀଙ୍କ ବିୟୋଗର ପ୍ରଭାବ । "

କିନ୍ତୁ ମୋ କଳ୍ପନା ଭୁଲ ଥିଲା । ସେମାନେ ମତେ ଭଲକରି ମନେ ରଖିଥିଲେ ଓ ଆଗଭଳି ଖୋଲିଗଲେ । ମୋ ପିଲାମାନଙ୍କୁ ବି ବେଶ୍ ଆଦରିନେଲେ । ଗପସପରୁ ଜାଣିଲି , "ଗୁରୁଜୀ ଚାଲିଯିବାର ତିନିମାସ ହୋଇଗଲାଣି ।

ବହିଙ୍କ ମେଳରେ ହିଁ ଗୁରୁଜୀ ଏକ ଶାନ୍ତ ସୁଖ ନିଦ୍ରା ଲଭିଥିଲେ । ଶେଷ ଦିନ ବି ସେ ଏକ ନୂଆ ବହି ଓଲଟାଇଥିଲେ ।  ବହିଟି  ଥିଲା, " ଏହି ମୋର ସ୍ୱର୍ଗ " । ତାଙ୍କ ଜୀବନରେ ସେ ଏହାକୁ  ରଚିସାରିଥିଲେ । ତଥାପି ଆଶା ରଖିଥିଲେ, ସ୍ୱର୍ଗକୁ ବି ଆହୁରି ସୁନ୍ଦର କରାଯାଇପାରେ ।  ବହିଙ୍କର ମେଳ ତାଙ୍କୁ ଆଶା ଯୋଗାଇ ଚାଲିଥିଲା ।

ଗୁରୁଜୀଙ୍କ ବିୟୋଗକୁ ପିଲାଏ ଆଂଶିକ ଭାବରେ ସହିଯାଇଥିଲେ । ପ୍ରତ୍ୟେକଙ୍କ ଠାରେ ଗୁରୁଜୀଙ୍କ ସ୍ନେହମୟ ଛାପ ଓ ଦରଦ ସ୍ପଷ୍ଟ ଭାବେ ଦେଖି ହେଉଥିଲା । କିନ୍ତୁ ସେମାନେ ଏକ ଗଭୀର ଅଭାବ ଅନୁଭବ କରୁଥିଲେ । ଏହା ଥିଲା ଗୁରୁଜୀଙ୍କ ପରିବାର ଠାରୁ ଦୂରତା । ତାଙ୍କର ପ୍ରିୟ ବହିସାଙ୍ଗମାନଙ୍କ ସହ ସେମାନଙ୍କର ସମ୍ପର୍କ କଟି ଯାଇଥିଲା । ଏଥର ମୁଁ ଅସଲ ଘଟଣାଟିକୁ ବୁଝିବାରେ ଲାଗିଲି ।

ଗୁରୁଜୀ ସେଦିନ ଚାଲିଗଲେ । ବହିଟିକୁ ଛାତି ଉପରେ ରଖି ସେ ଶାନ୍ତିରେ ଶୋଇଯାଇଥାନ୍ତି । ଗାଁ ବଇଦ ଏହାକୁ ଚିରନିଦ୍ରା ବୋଲି ଘୋଷଣା କରିଥିଲେ । ପ୍ରକୃତିର ବିଚ୍ଛେଦ ଲୀଳାକୁ ସଭିଏଁ ସହିଲେ । ସଭିଏଁ ମିଶି ଗୁରୁଜୀଙ୍କ ଦେହଟିକୁ ମଶାଣି ଭୂଇଁରେ ତେଜି ଦେଲେ । ସେଦିନ ଉପରବେଳା ଗାଁରେ ସଭା ବସିଲା । ଗୁରୁଜୀଙ୍କୁ ମନେ ପକାଇ ସଭିଏଁ ନିଜ ଶୋକ ବାଢ଼ିଲେ । ଏଥର ଆମ ନିଜ ପାଇଁ ଚିନ୍ତା ଓ ଯୋଜନା । ଗାଁର ପ୍ରିୟ ମଣିଷଟି ପାଇଁ ସଭିଙ୍କର ଦରଦ ଥିଲା । ସଭା ଠିକ୍ କଲା ଯେ, ସେମାନେ ଗୁରୁଜୀଙ୍କ ସମ୍ପତ୍ତିକୁ ସାଇତି ରଖିବେ । ଏହା ନିଶ୍ଚୟ ଏକ ଗୁରୁପ୍ରେମୀ ସମାଜର ସ୍ନେହ ।



କିନ୍ତୁ ଏହା ଜୀବନ୍ତ ନ ଥିଲା । ଜଡ଼ ବିଚାରର କ୍ରୁରତା ତା'ର ରାଜୁତି ଆରମ୍ଭ କଲା । କେହି ବୁଝିଲେନି ଗୁରୁଜୀଙ୍କ ମନ ଓ ବିଚାରଧାରାକୁ । ସେ ଚାହୁଁଥିଲେ - ବହି ମାଧ୍ୟମରେ ଆମମାନଙ୍କର ଆଖି ଖୋଲୁ, ଚେତନାର ବିକାଶ ହେଉ । ମାନବିକତାର ମଞ୍ଜି ଚେର ଧରୁ । କିନ୍ତୁ ଗାଁ ସଭା ଠିକ୍ କଲା, ଏହି ବିଚାରଧାରାକୁ ଏକ ନିବୁଜ କଫିନରେ କବର ଦେବା ପାଇଁ ।

ସଭିଏଁ ଭାବିଲେ ପିଲାଏ ଭାରି ଦୁଷ୍ଟ । ସେମାନେ ଲାଗିଲେ, ପ୍ରିୟ ଗୁରୁଜୀଙ୍କ ବହିଗୁଡ଼ିକର ଆୟୁଷ ତୁଟିଯିବ । ତେଣୁ ଘରଟିରେ ତାଲା ପକାଇ ଦିଆଯିବ । ଗୋଟିଏ ବଡ଼ ପଟାରେ ସୁନ୍ଦର କରି ଲେଖାଯିବ " ଗୁରୁଜୀଙ୍କ ସ୍ମୃତି ପୀଠ " ।

ଏହି ଦୁନିଆର ଜଡ଼ତା କାହାକୁ ଛାଡ଼େ ନାହିଁ । ଲୁହାରେ କଳଙ୍କ ଧରିଲା ପରି ଜଡ଼ତା ମଣିଷକୁ ଛାଇ ପରି ଘୋଡ଼ାଇଥାଏ । ଯେଉଁ ମଣିଷ ଯେତେ ଘଷି, ମାଜି କଳଙ୍କ ଛଡ଼ାଇପାରେ, ସେ ମଣିଷ ସମାଜ ଆଗରେ ସେତିକି ଝଲସିପାରେ । ସେତିକି ଆଶା ଓ ସ୍ୱପ୍ନ ବି ଦେଖାଇପାରେ । ଗୁରୁଜୀ ଶେଷ ଯାଏ ଜଡ଼ତାର କଳଙ୍କକୁ ଦୂରେଇ ରଖିଗଲେ ।

ଏଥିରେ ସହଯୋଗ କରିଥିଲେ ତାଙ୍କର ସାଥି ବହିମାନେ । ଗାଁର ପିଲାମାନେ ମଧ୍ୟ କଳଙ୍କମୁକ୍ତ ରହିବାର କୌଶଳ ଶିଖିପାରିଥିଲେ । ମୁଁ ମଧ୍ୟ ଏଇଥିପାଇଁ ତେଜି ଉଠିଥିଲି । କିନ୍ତୁ ଗୁରୁଜୀଙ୍କ ବିୟୋଗଟି ଏହି ପଦ୍ଧତିଟିକୁ ଏକ ଶକ୍ତ ଧକ୍କା ଆଣି ଦେଇଥିଲା । ପିଲାଙ୍କ ଶୁଖିଲା ମୁହଁରୁ ମୁଁ ଠଉରାଇନେଲି ତାଙ୍କ ବହି ସାଙ୍ଗମାନଙ୍କ ଅବସ୍ଥାକୁ ।

ସେମାନେ ଦିନେ ସ୍ୱର୍ଗର ପରଶ ଓ ପୁଲକରେ ଫୁଲପରି ହସୁଥିଲେ । କିନ୍ତୁ ତିନି ମାସ ଧରି ତାଙ୍କୁ ନିର୍ବାସିତ କରି ଦିଆଯାଇଥିଲା । ଗୋଟିଏ ପଟେ ତାଙ୍କର ଜୀବନସମ ଗୁରୁଜୀଙ୍କ ବିୟୋଗ, ଆର ପଟେ ଏକ ଅନ୍ଧ କୂପରେ ନିଃସଙ୍ଗତା । ମତେ ଲାଗିଲା, ଯେପରି ମତେ କିଏ ଏକ ଅନ୍ଧାର ଓ ବାୟୁରୁଦ୍ଧ କୋଠରୀ ଭିତରେ ବନ୍ଦୀ କରିଦେଇଛି !

ଗୁରୁଜୀଙ୍କ ମେଳରେ ବହିଙ୍କର ଖୁସି ସମୟ କଥା ବି ମନେ ପଡ଼ିଲା । ଏବେର ଅବସ୍ଥାକୁ ବଦଳାଇବାରେ ମୋର ଏକ ଗୁରୁତ୍ୱପୂର୍ଣ ଭୂମିକା ଲୋଡ଼ା ଥିଲା । ମୋ ଭିତରୁ ଏକ ପ୍ରବଳ ଚାପ ମୁଁ ଅନୁଭବ କଲି ।

ଆମେ ସମସ୍ତେ ଯାଇ ଗୁରୁଜୀଙ୍କ ଘର ଆଗରେ ବସିଲୁ । ମୋ ଆଗରୁ ପିଲାଏ ଖୁବ୍ ଜୋରରେ ଗାଇବାକୁ ଆରମ୍ଭ କଲେ ।

ଶୁଣ ଭାଇ ଭଉଣୀ ହେ ବହି କିଛି କହୁଛି ,
ଶୁଣିକି ପାରୁଛ ତୁମେ ସେ ଯେ କହି ଚାଲିଛି ।

କିନ୍ତୁ ସେ ଦିନର ଗୁରୁଜୀ ଆମ ପାଖରେ ନ ଥିଲେ । ଆମେ ସମସ୍ତେ କାନ୍ଦି କାନ୍ଦି ଗାଉଥିଲୁ । କ୍ରମଶଃ ଭିଡ଼ ବଢ଼ିଲା । ଜଣ ଜଣ କରି ଗାଁଟା ଯାକର ଲୋକ ଆମକୁ ଘେରିଗଲେ । ଗୁରୁଜୀ ଚାଲିଯିବା ଦିନ ବି ଏପରି ଭିଡ଼ ହୋଇଥିଲା । ଗୁରୁଜୀଙ୍କ ସ୍ମୃତିରେ ମୁହଁ ଶୁଖାଇ ସମସ୍ତେ ମୁହଁ ତଳକୁ କରି ଠିଆ ହୋଇଥାନ୍ତି ।



ମୁଁ ଠିଆ ହୋଇ କହିବାକୁ ଆରମ୍ଭ କଲି, "ସମସ୍ତଙ୍କୁ ଆମର ନମସ୍କାର । ଆମେ ଏ କଥାଟି ବହୁତ ଡେ଼ରିରେ ଜାଣି ପାରିଲୁ । ଆମେ ଆସିଥିଲୁ ଗୁରୁଜୀଙ୍କ ଘରେ କିଛି ସମୟ କଟାଇବୁ ବୋଲି । କିନ୍ତୁ ଆସି ଜାଣିଲୁ ଯେ ଗୁରୁଜୀ ତିନିମାସ ଆଗରୁ ଚାଲିଯାଇଛନ୍ତି । ବହୁତ ବାଧିଲା ।  ଆପଣମାନଙ୍କୁ ବି ଏହା ବହୁତ ବାଧୁଛି ।

କେହି କେହି କାନ୍ଦିବାକୁ ଲାଗିଲେ । ନିଜ ଗାମୁଛା ଓ ଲୁଗା କାନିରେ ଲୁହ ଓ ସିଙ୍ଘାଣି ପୋଛୁଥାନ୍ତି । ମୁଁ କହି ଚାଲିଲି : " ଆମେ ଗୁରୁଜୀଙ୍କ ପରିବାରଟିକୁ ଖୋଜିଲୁ "। ଜଣେ କିଏ କହି ପକାଇଲେ, " ବାବୁ, ଗୁରୁଜୀଙ୍କ ପରିବାର କହିଲେ ଆଉ କେହି ନ ଥିଲେ, ସେ ଏକା ରହୁଥିଲେ ।"

ମୁଁ କହିଲି " ପ୍ରିୟ ଭାଇ ଭଉଣୀମାନେ, ଆମେ ଏହାକୁ ଭୁଲ ବୁଝିଛେ । ଗୁରୁଜୀ କଦାପି ଏକା ନ ଥିଲେ । ପୂରା ଗାଁଟି ଯାକର ଓ ବାହାରର ମଣିଷ ଥିଲେ ତାଙ୍କ ପାଇଁ ଏକ ପରିବାର । ସେ ସମସ୍ତଙ୍କୁ ନିଜର ପରି ଭଲ ପାଉଥିଲେ । ପିଲାଙ୍କଠୁଁ ଆରମ୍ଭ କରି ବୁଢ଼ୀବୁଢ଼ା ସମସ୍ତେ ତାଙ୍କର ସାଙ୍ଗ ଥିଲେ । ବହିମାନେ ତାଙ୍କର ମକର ଥିଲେ । ସେମାନଙ୍କ ସହ ସେ କେତେ ଦୁଃଖ ସୁଖ ହେଉଥିଲେ । ବହି ମାଧ୍ୟମରେ ସେ ଘରେ ଘରେ ସ୍ୱର୍ଗ ଗଢ଼ିବାର ଚେଷ୍ଟା ଚଳାଇଥିଲେ । ଆମ ପିଲାମାନଙ୍କ ଠାରେ ସେ ଏହି ଆଶା ମଞ୍ଜି ବୁଣି ଚାଲିଥିଲେ । ସମସ୍ତେ ମିଶି ଗୁରୁଜୀଙ୍କ ବହି କୋଠିଟିରେ ସ୍ୱର୍ଗର ସୁଖ ଅନୁଭବ କରୁଥିଲେ ।

କିନ୍ତୁ ଆଜି ଆପଣମାନେ ଏ କ'ଣ କରିଛନ୍ତି ? ଆଜି ଗୁରୁଜୀଙ୍କ ସାଥି ପିଲାଙ୍କ ମୁହଁରେ ଗଭୀର ଦୁଃଖ ଓ ଆଖିରେ ଲୁହ ! ତେଣେ ଗୁରୁଜୀଙ୍କ ଜୀବନ୍ତ ବହି ସାଙ୍ଗମାନଙ୍କୁ ଆପଣ କୋଇଲା ଘର ପରି ତାଲା ପକାଇ ରଖିଛନ୍ତି । ଆଜି ଗୁରୁଜୀ  ଯଦି ଫେରି ଆସନ୍ତି, ସେ କ'ଣ କହିବେ ଜାଣନ୍ତି ? ସେ କାନ୍ଦି ପକାଇବେ । ଗୁରୁଜୀଙ୍କ କାମ ଓ ସ୍ୱପ୍ନକୁ ଆପଣମାନେ ଚୁରମାର୍ କରି ଦେଇଛନ୍ତି । ଏହା ଆପଣ ଠିକ୍ କରିଛନ୍ତି କି  ? ଗାଁର ଜଣେ ବୟସ୍କ  ଲୋକ ମୋ ପରିଚୟ ଚାହିଁଲେ । ମୁଁ ଗୁରୁଜୀଙ୍କ ସହ ମୋ ଅନୁଭୂତି ଶୁଣାଇଲି । ସେ କହିଲେ, "ଆଜ୍ଞା, ଆପଣ ଯାହା କହିଲେ ତା' ପୂରା ସତ କଥା । ଗୁରୁଜୀ

ଚାଲିଯିବା ପରେ ଆମେ କ'ଣ କରିବୁ ଭାବି ପାରିଲୁ ନାହିଁ । ଭାବିଲୁ ଘରଟିକୁ ସାଇତି ରଖିଲେ ଆମକୁ ଭଲ ଲାଗିବ । ଦେଶରେ ଗାନ୍ଧୀ, ନେହେରୁ ଆଦିଙ୍କର ଘର ଓ ସମ୍ପତ୍ତିକୁ ଏପରି ସାଇତା ଯାଇଛି ବୋଲି ଆମେ ଶୁଣିଛୁ । ତେଣୁ ଆମେ ବି ଗୁରୁଜୀଙ୍କ ସମ୍ପତ୍ତିକୁ ସାଇତିବା ପାଇଁ ତାଲା ଲଗାଇଦେଲୁ । ''

ମୁଁ କହିଲି, ''ପ୍ରିୟ ସାଥି, ହଁ ଆପଣ ଠିକ୍ କଥା କହିଛନ୍ତି । ଗାନ୍ଧୀଙ୍କର ସମ୍ପତ୍ତି କହିଲେ ଆମେ ଭୁଲ ବୁଝିଛେ । ତାଙ୍କର ଅସଲ ସମ୍ପତ୍ତି ଥିଲା ତାଙ୍କର ମନ, ବିଚାରଧାରା ଓ କାର୍ଯ୍ୟ ପ୍ରଣାଳୀ । ଆମେ ତାକୁ ପ୍ରୟୋଗ କରୁନାହେଁ । ଓଲଟା ତାଙ୍କର କ୍ଷୟଶୀଳ ଜୋତା, ଘର ଓ ଲୁଗାପଟାକୁ ହିଁ ସାଇତିବାକୁ ଚେଷ୍ଟା କରୁଛେ । ଫଳରେ ଗାନ୍ଧୀପଣିଆ ମରିମରି ଯାଉଛି । କିନ୍ତୁ ଗାନ୍ଧୀଙ୍କ ନାଁରେ ଠକାମି ବଢ଼ିଚାଲିଛି । ଆମେ ଏଠାରେ ଗୁରୁଜୀଙ୍କ ପ୍ରତି ମଧ୍ୟ ଏହି ଅନ୍ୟାୟ କରି ବସିଛେ । ଏହା ତାଙ୍କ ପ୍ରତି ଅପମାନ ।

ଦୁଇ ତିନି ଜଣ ଏକାଥରକେ ପଚାରିଲେ: ''ତା ହେଲେ ଆମେ କ'ଣ କରିପାରିବା ?'' ଏହି ପ୍ରଶ୍ନଟି ଶୁଣି ମତେ ଖୁବ୍ ଖୁସି ଲାଗିଲା । ମୁଁ ଉତ୍ସାହର ସହ କହିଲି, ''ଆମେ ଗୁରୁଜୀଙ୍କ କାମକୁ କବର ଦେବା ନାହିଁ । ଆମେ ଏହାକୁ ଆଗେଇନେବା । ଗୁରୁଜୀଙ୍କ ବିଚାରଧାରାକୁ ଆମେ ବଞ୍ଚାଇ ରଖିବା କିପରି ? ଗୁରୁଜୀ ନିଜେ ଆଖି ବୁଜିବା ଆଗରୁ ଆମପରି ଅନେକ ଲୋକଙ୍କର ଆଖି ଖୋଲି ଦେଇଛନ୍ତି ।''



ପାଖରେ ବସିଥିବା ଗାଁର ମୋ ସାଥି ପିଲାଙ୍କୁ ହାତ ଦେଖାଇ କହିଲି, " ଏମାନେ ନିଜେ ଗୁରୁଜୀଙ୍କ ସହ ହାତ ମିଳାଇଛନ୍ତି । ଗୁରୁଜୀଙ୍କ ସହ ମିଶି ଶେଷ ଯାଏଁ କାମଟିକୁ ଚଳାଇଛନ୍ତି । ଏମାନଙ୍କ ଯତନରେ ଗୁରୁଜୀ ଓ ତାଙ୍କ ପ୍ରିୟ ବହିମାନେ କେତେ ହସ ମଉଜ କରିଛନ୍ତି । ଅଥଚ ଆପଣ ଆଜି ସେମାନଙ୍କ ବନ୍ଧୁତାକୁ କାଟି ପକାଇଛନ୍ତି । ଏଣେ ଏମାନଙ୍କ ଆଖିରେ ଲୁହ ଆଉ ପେଟରେ କୋହ । ତେଣେ ନିଃସଙ୍ଗ ବହିମାନଙ୍କ ଅବସ୍ଥା କି ଦୟନୀୟ ହୋଇଥିବ ତା' ମୁଁ ବୁଝିପାରୁଛି । ଆପଣ ମନେ କରନ୍ତୁ, ଯଦି ମୁଁ ଆପଣଙ୍କୁ ସାରା ସମାଜରୁ ଅଲଗା କରି ଦେଇ ଏକ ଅନ୍ଧକୂପ ଭିତରେ ଏକଲା ଛାଡ଼ି ଦେବି, ତେବେ ଆପଣଙ୍କୁ କିପରି ଲାଗିବ ? "

କେତେ ଜଣ ଲୋକ ମୁଣ୍ଡ ତଳକୁ ରଖି ମୁଣ୍ଡ ଝୁଙ୍କାରିଲେ । ଜଣେ କହିଲେ "ପିଲାଙ୍କ ହାତରେ ବହିଗୁଡ଼ିକ ନଷ୍ଟ ହୋଇଯିବ "। ମୁଁ କହିଲି, " ଏହା ବି ଭୁଲ କଥା । ଏମାନେ ହିଁ ଗୁରୁଜୀଙ୍କ ସହ ମିଶି ବହିଗୁଡ଼ିକୁ ଝାଡ଼ିଝୁଡ଼ି ମରାମତି କରୁଥିଲେ । ପିଲା କହିଲେ ଆମେ ସବୁବେଳେ କାହିଁକି ଏପରି ନିକୁଛିଆ ଭାବେ ଦେଖୁଛେ ? ସେମାନଙ୍କ ଠାରେ ଆମ ପରିକା ଅନୁଭୂତି ଓ ଅଭିଜ୍ଞତା ନାହିଁ । କିନ୍ତୁ ସେମାନଙ୍କ ଠାରେ ଆମଠୁ ଯଥେଷ୍ଟ ବେଶୀ ଉତ୍ସାହ, ଦମ୍ , ସୃଜନଶୀଳତା ଓ ଆଶା ଅଛି । ଆମେ ହାତ ମିଳାଇଲେ, ସେମାନେ ଆମ ସ୍ୱପ୍ନକୁ ଅଧିକ ସୁନ୍ଦର ରୂପରେ ସାକାର କରିପାରିବେ । ସେମାନେ ଆମଠାରୁ ସହଯୋଗ, ସମର୍ଥନ ଓ ଆଦର ଚାହାନ୍ତି । "

ସମସ୍ତେ ମୋ କଥାକୁ ନୀରବ ଭାବରେ ଶୁଣୁଥାନ୍ତି । ମୋ କଥାକୁ ସେମାନେ ସମର୍ଥନ କଲେ ବି ପୂରା ସନ୍ଦେହମୁକ୍ତ ନଥିଲେ । ମୁଁ ତାଙ୍କୁ ଏକ ପୂର୍ଣାଙ୍ଗ ରୂପରେ ବୁଝାଇବାକୁ ଚେଷ୍ଟା କଲି । କହିଲି, " ମୋ କଥାକୁ ଆପଣମାନେ ପୂରାପୂରି ଗ୍ରହଣ କରି ପାରୁନାହାନ୍ତି ଏହା ମୁଁ ବୁଝିପାରୁଛି । କିନ୍ତୁ ଆପଣ ଏଥିପାଇଁ ଆମକୁ ଏକ ସପ୍ତାହ ସୁଯୋଗ ଦିଅନ୍ତୁ । ଏହା ଯଦି ଆପଣଙ୍କୁ ଭଲ ନ ଲାଗେ, ତେବେ ଆମେ ତାହାର ବିକଳ୍ପ ଚିନ୍ତା କରିବା । "

ମୋର ଏହି ପ୍ରସ୍ତାବରେ ସମସ୍ତେ ରାଜିଥିଲେ । ଆମେ ତାଲାଟିକୁ ଖୋଲିଲୁ । ତିନିମାସ ହେଲା କେହି ଏହା ମଧ୍ୟକୁ ପଶି ନଥିଲେ । ବୋଧହୁଏ ଗୁରୁଜୀଙ୍କ ଜନ୍ମଦିନରେ ଏହାକୁ ଝାଡ଼ିଝୁଡ଼ି ସଫା କରାଯାଇଥାନ୍ତା ଓ ଗୁରୁଜୀଙ୍କ ଫଟୋରେ



ଫୁଲମାଳ ଦିଆଯାଇଥାନ୍ତା । ଏହା ବହିକୋଠି ବଦଳରେ ଏକ ଭୂତକୋଠି ପାଲଟି ଯାଇଥାନ୍ତା । ଅନ୍ଧାର ଘରଟି ଭିତରେ ବୁଢ଼ିଆଣୀ ଜାଲ ଭରି ଯାଇଥାଏ । ଘର ଭିତରକୁ କେବଳ ଗାଁର ପିଲାଙ୍କ ସହ ମୁଁ ପଶିଲି । ପ୍ରଥମେ ଘରର ଝରକା, କବାଟ ଗୁଡ଼ିକୁ ଖୋଲିଦେଲୁ । ତାଜା ପବନ ଓ ଆଲୁଅ ପଶିଲା ପରେ ଘରଟା ଟିକେ ଅଲଗା ଲାଗିଲା ।

ସ୍କୁଲ, କଲେଜର ପାଠାଗାର ପରି ଏଠାରେ ବି ବହିମାନେ ଚୁପଚାପ ପଡ଼ି ରହିଥିଲେ । ସେମାନଙ୍କ ଜୀବନ ନ ଥିଲା ପରି ଲାଗୁଥିଲା । ଲାଗୁଥିଲା ସତେ ଯେପରି କେଉଁ ଦିନର ଗହଳିଆ ଗଛଗୁଡ଼ିକ ପତ୍ରଝଡ଼ା ଦେଇ ଆଜି ମୂକ ଭାବରେ ଅନେଇ ରହିଛନ୍ତି । କି ଦାରୁଣ ସେହି ଦୃଶ୍ୟ ! ସଭିଙ୍କ ଉପରେ ଧୂଳି ଜମି ମଳିନ ଦେଖାଯାଉଥାଏ । ମୁହଁକୁ ଶୁଖାଇ ସଭିଏଁ କଡ଼କୁ ଢ଼ଳି ପଡ଼ିଥାନ୍ତି । ଆମକୁ ଦେଖି ସେମାନେ ଆଖି ମିଟି ମିଟି କରି ଅନାଇଲେ ।

ତାଙ୍କୁ ଆମେ ଭୋକିଲା ଆଖିରେ ଅନାଇଥାଉ । ସେମାନେ ଏଥର ଝାଡ଼ିଝୁଡ଼ି ହେଲେ । ସେମାନେ ପିଲାଙ୍କ ହାତକୁ ଡ଼େଇଁ ପଡ଼ିବାକୁ ଚାହୁଁଥାନ୍ତି । ପିଲାଏ ତାଙ୍କ ପାଖକୁ ଦଉଡ଼ିଗଲେ । ଆମେ ଲାଗିପଡ଼ି ଘରଟିକୁ ପୂରା ସଫା କଲୁ । ବହିମାନଙ୍କୁ ବି ଝାଡ଼ିଝୁଡ଼ି ସଜାଡ଼ି ରଖିଲୁ ।

ଏଥର ଗାଁ ଲୋକମାନେ ବି ବହିକୋଠିକୁ ଆସିଲେ । ପିଲାଙ୍କ ହାତରେ ହସିଲା, ଖେଳିଲା ବହିକୁ ଦେଖି ସେମାନେ ବି ଖୁସି ହୋଇଗଲେ । ସପ୍ତାହେ କାଳ ଲାଗିପଡ଼ି ଆମେ ଆଗର ଖୁସି ବାତାବରଣକୁ ଲେଉଟାଇବାକୁ ଚେଷ୍ଟା କଲୁ । ଗାଁର ପିଲାମାନେ ନିଜ ନିଜ ଭିତରେ କାମ ବାଣ୍ଟିନେଲେ । ଆମେ ଠିକ୍ କଲୁ , ଏହି ପାଠାଗାରଟିକୁ ଆହୁରି ବଢ଼ାଇବୁ । ଗାଁରେ ସମସ୍ତେ ନିୟମିତ କିଛି କିଛି ସାହାଯ୍ୟ କରିବେ । ଏହାକୁ ଆଧାର କରି ଗାଁରେ ମଝିରେ ମଝିରେ ଆଲୋଚନା,ଆସର ଓ ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ କରାଯିବ । ଗାଁଲୋକ ବି ଏଥିରେ ରାଜିହେଲେ । ପିଲାମାନଙ୍କର ଉତ୍ସାହ ଓ କାମ ଦେଖି ତାଙ୍କର ବିଶ୍ୱାସ ଯଥେଷ୍ଟ ବଢ଼ିଥିଲା । ଏହି ପାଠାଗାରଟିକୁ କେନ୍ଦ୍ର କରି ଗାଁର ପୂର୍ଣାଙ୍ଗ ବିକାଶ ପାଇଁ ମୁଁ ବି ଆଶା ରଖିପାରିଲି ।

ଆମର ଫେରିବା ସମୟ ହୋଇଯାଇଥିଲା, ମୋ ସାଙ୍ଗ ପିଲାମାନେ ଏହି ସାତ ଦିନ ଭିତରେ କିଏ କେଉଁଦିନ କେଉଁଠି ରହିଲେ ଓ ଖାଇଲେ ତା'ର ହିସାବ ମଟେ ରଖିବାକୁ ପଡ଼ି ନ ଥିଲା । ଗାଁର ଆତିଥ୍ୟରେ ସେମାନେ ସବୁ ଭୁଲି ଯାଇଥିଲେ । ବହି ମାଧ୍ୟମରେ ଗାଁଟି ସହିତ ବନ୍ଧୁତ୍ୱ-ତାଙ୍କ ପାଇଁ ଯଥେଷ୍ଟ ଆନନ୍ଦ ଆଣି ଦେଇଥିଲା । ସେମାନେ ବି ନିଜ ଗାଁରେ ଏପରି ବହିପ୍ରେମୀ ଅଭିଯାନ ପାଇଁ ସ୍ୱପ୍ନ ଦେଖୁଥିଲେ ।

ଘଟଣାଟିର ପ୍ରାୟ ୧୨ବର୍ଷ ପରେ ମୁଁ ଏହି ଲେଖାଟି ଲେଖୁଛି । ଏହା ଭିତରେ ଗାଁଟିର ରୂପରେଖା ଯଥେଷ୍ଟ ବଦଳି ଯାଇଛି । ଗାଁଟିର ବଦଳଧାରଟିକୁ ମୁଁ ନିୟମିତ ବ୍ୟବଧାନରେ ଦେଖୁଛି । ମୋ ଉପସ୍ଥିତି କେବଳ ଏକ ସମର୍ଥକ ରୂପେ ହୋଇ ଆସିଛି । କିନ୍ତୁ ଗାଁଟିର ପିଲା ଓ ବଡ଼ମାନେ ହିଁ ବହିପ୍ରେମୀ ଅଭିଯାନଟିକୁ ନିଜ ଯୋଜନା ଓ ଉଦ୍ୟମ ମାଧ୍ୟମରେ

ଜାରିରଖିଛନ୍ତି। ବହିକୋଠିଟିରେ ବହିର ସଂଖ୍ୟା ଯଥେଷ୍ଟ ବଢ଼ିଛି । ଗୁରୁଜୀଙ୍କ ମକରଙ୍କ ମଧ୍ୟରୁ କେତେକଙ୍କର ଆୟୁଷ ପୂରିସାରିଲାଣି । ଏ ବର୍ଷ ମୁଁ ପ୍ରାୟ ୩୭ ଜଣଙ୍କୁ ଚିହ୍ନିପାରିଲି । କିନ୍ତୁ ନୂଆ ନୂଆ ସାଙ୍ଗ ମିଶି ବହିଙ୍କ ସଂଖ୍ୟା ଏବେ ୧୭ ହଜାର ହେଲାଣି । ଗାଁ ଗହଳ ଛଡ଼ା ଦେଶ ବିଦେଶରୁ ମଧ୍ୟ ଅନେକ ବହି ଆସିଛନ୍ତି । ଏବେ ବିଭିନ୍ନ ଦିଗରୁ ମାପିଲେ, ଏହି ବହି କୋଠିଟି ଗାଁର ଲୋକଙ୍କ ପାଇଁ ଏବେ ସାରା ଦୁନିଆଁକୁ ଦେଖିବାର ବାଟ ମେଲିଛି ।

ଗୁରୁଜୀ ଆଜି ନାହାନ୍ତି । ଗୁରୁଜୀଙ୍କ ସମୟର ମକର ବି ଏବେ କମ୍ ଅଛନ୍ତି । କିନ୍ତୁ ଗୁରୁଜୀଙ୍କ ସାଙ୍ଗ ପିଲାଙ୍କ ପିଲା ବି ଏବେ କୋଠିରେ ବସୁଛନ୍ତି, ହସୁଛନ୍ତି, ଖେଳୁଛନ୍ତି ଓ ଦୁନିଆଁର ବଦଳଧାରାକୁ ଦେଖିଚାଲିଛନ୍ତି ।

ଏହି ଧାରାଟି ଚାଲିଥିବ ।



# ଆମ ପାଠଶାଳା

(ବାଜି ରାଉତ ଛାତ୍ରାବାସର ଗୀତ)



ଆମ ପାଠଶାଳା,
ନିଜହାତେ ଗଢ଼ା,
ବିଶେ ଶୋଭାବନରେ ।
ଆମ ପାଠଶାଳା ....
କୁଞ୍ଜେ କୁଞ୍ଜେ ମଧୁମାଳତୀ ହସେ,
କାନନ ଭରେ ମଲ୍ଲୀ ସଜଳ ବାସେ,
ପାହାଚି ସମୀରେ ତା'ର ପାଖୁଡ଼ା ଖସେ,
ପରମ ସୁହାଗେ ମରମ ଆବେଗେ,
ସୁଖେ କାଟୁ ଦିନରେ ।
ଆମ ପାଠଶାଳା .....
ଶାଳବଣେ ଡ଼ାକିଯାଏ ବିହଗ ବଧୂ,
ମହୁମାଛି ଉଡ଼ି ପିଏ ବିମଳ ମଧୁ,
ଆମେ ସବୁ ଜାଗିଉଠୁ ଗଭୀର ନିଦୁ,
ଲାଗୁ ନିଜ କରମେ, ଦେଶ ସେବା ଧରମେ,
ଢ଼ାଳି ମନ ପ୍ରାଣରେ ।
ଆମ ପାଠଶାଳା .....
ନାରିକେଳ ପତ୍ରପୁଞ୍ଜେ ନୁଆଚି ମଥା,
ମନ୍ଦାରକଳିଟି ଖୋଲେ ନୟନ ପତା,
କାନେ କାନେ କହେ କେଉଁ ଗୋପନ କଥା,
ଥିରି ବାଆ ପରଶେ ପ୍ରାଣେ ଆଣେ ହରଷ,
ଘୁଞ୍ଚେ ଦୁଃଖ ଦୈନ୍ୟରେ ।
ଆମ ପାଠଶାଳା .....

# ଆମେ ହସିଲେ

• ଜୟନ୍ତି ତ୍ରିପାଠୀ

ଆମେ ହସିଲେ ଦୁନିଆ ହସେ,
ହସେ ଆକାଶ ତାରା,
ହସି ଉଠଇ ବଉଦ ତଳୁ,
ଜୁନି ଚାନ୍ଦଟା ପରା ।
ଲତା ଗହଳୁ ଫୁଲଟି ହସେ,
ହସେ ପରଜାପତି,
ନୀଳ ଆକାଶେ ଚଢ଼େଇ ହସେ,
ଗାଏ ପବନ ଗୀତି,
ସାଗର ହସେ ସୂରୁଯ ହସେ,
ଶୁଖିଲା ମାଟି ହସେ,
ହସି ହସିକା ଦୂର ଆକାଶୁ,
ବରଷା କେତେ ଖସେ ।
ଆମେ ହସିଲେ .....

ଆମ ହସରେ ଶୁଖାଇ ଦେବୁ,
ସବୁରି ଆଖି ଲୁହ,
ସବୁରି ଓଠେ ଝରାଇ ଦେବୁ,
ହସର ସୁନା ସୁଅ ।
ଗାଇବୁ ଆମେ ନାଚିବୁ ଆମେ,
ବଜାଇ କେତେ ବାଜା
କରିବୁ ମଜା ଆମେରେ ସବୁ,
ନୂଆ ଦୁନିଆ ରଜା ।

